ISSN: 2456-9194, Vol. III, Issue. IV, March 2020


ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php




# ୧୯୬୦ ପରବର୍ତ୍ତୀ ଓଡ଼ିଆ କବିତାରେ ଲୋକଉପାଦାନ


**ଶ୍ରୀ ରଶ୍ମିରଂଜନ ନାୟକ**

ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ, ସରକାରୀ ମହାବିଦ୍ୟାଳୟ, କୋରାପୁଟ

E-mail: nayak5454@gmail.com



**ସାରମର୍ମ :** ଉତ୍ତର ଷାଠିଏ ପରବର୍ତ୍ତୀ ଓଡ଼ିଆ କବିତାର ଆଙ୍ଗିକ ଶୈଳୀରେ ଲୋକଉପାଦାନର ପ୍ରୟୋଗ କବିତାକୁ ରୁଚିସଂପନ୍ନ କରି ଗଢ଼ିତୋଳିଛି । ଆଜିର ବିଜ୍ଞାନ ଯୁଗରେ ମଣିଷ ଯେତେ ଶିକ୍ଷିତ ହେଲେ ମଧ ତା'ର ଅନ୍ତରାତ୍ମାର ଲୋକସଂସ୍କୃତିକୁ ସଂପୂର୍ଣ୍ଣ ଲୋପ କରିପାରିନାହିଁ । କେଉଁ ଆବାହମାନ କାଳରୁ ମାନବଜାତି ଲୋକସଂସ୍କୃତି ମଧଦେଇ ଗତି କରିଆସିଛି । ୧୯୬୦ ପରବର୍ତ୍ତୀ ଓଡ଼ିଆ କବିତା ଲୋକସଂସ୍କୃତି ବା ଲୋକଉପାଦାନର ପ୍ରସଙ୍ଗଗୁଡ଼ିକୁ ଆତ୍ମସାତ କରି ବଳିଷ୍ଠ ତଥା ଭାବଗର୍ଭକ ହୋଇପାରିଛି। ସମକାଳୀନ କ୍ଷୁଦ୍ର ଯନ୍ତ୍ରଣାର କଥା ତଥା ବ୍ୟକ୍ତିର ପ୍ରବୃତ୍ତି ଓ ଆଚରଣ ଆଦି ନାନାବିଧ ଦିଗ ଲୋକଉପାଦାନ ମାଧ୍ୟମରେ ଓଡ଼ିଆ କବିତାରେ ପ୍ରୟୋଗ ମାନ୍ୟତା ପାଇଛି ।



***ପ୍ରମୁଖ ଶବ୍ଦ:*** *ଓଡ଼ିଆ କବିତା, ଲୋକଉପାଦାନ, ଲୋକସଂସ୍କୃତି, କାବ୍ୟକବିତା, ଲୋକସାହିତ୍ୟ, ମିଥ୍*


ଯେକୌଣସି ଜାତିର ପ୍ରାଣସ୍ପନ୍ଦନକୁ ତାର ସଂସ୍କୃତି ଭିତରୁ ଉପଲବ୍ଧି କରିହୁଏ । ସଂସ୍କୃତିର ସ୍ୱରୂପ ଲୋକଚଳଣିର ବିବିଧ ଉପାଦାନରୁ ଅନୁଧ୍ୟାନ କରାଯାଇପାରେ । ଲୋକଉପାଦାନଗୁଡ଼ିକ ହିଁ ଭାରତୀୟ ସଂସ୍କୃତିର ଆଧାରଶିଳା । ଓଡ଼ିଆ କାବ୍ୟକବିତାରେ ଆରମ୍ଭରୁ ଆଜିଯାଏ ପ୍ରତିଟି କ୍ଷେତ୍ରରେ ଲୋକଚଳଣି ଓ ଲୋକସଂସ୍କୃତିର ଝଲକ ଦେଖିବାକୁ ମିଳେ । ସାରଳା ସାହିତ୍ୟଠୁଁ ପଞ୍ଚସଖା ସାହିତ୍ୟ, ରୀତି ସାହିତ୍ୟଠୁଁ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ସବୁଠି ଲୋକଉପାଦାନର ପ୍ରୟୋଗ ଦେଖିବାକୁ ମିଳେ । ଲୋକଗୀତ, ଲୋକକାହାଣୀ, ଲୋକନାଟକ, ଲୋକାଚାର, ଲୋକବିଶ୍ୱାସ, ଢଗଢ଼ମାଳି, ପ୍ରବାଦ ଓ ପ୍ରବଚନ ଆଦିର ବହୁଳ ବ୍ୟବହାର ଓଡ଼ିଆ କାବ୍ୟକବିତାକୁ ଋଦ୍ଧିମନ୍ତ କରଛି । କବତାରେ ପରୀକ୍ଷାନିରୀକ୍ଷା ଉତ୍ତାରୁ ଆଧୁନିକ ସମୟରେ ଓଡ଼ିଆ କବିମାନେ ପରମ୍ପରା ପ୍ରତି ସିଂହାବଲୋକନ କଲେ । ଏହି ପରିପ୍ରେକ୍ଷୀରେ ଆଧୁନିକ ଓଡ଼ିଆ କବିତାରେ ଲୋକସାହିତ୍ୟର ବିଭିନ୍ନ ଉପାଦାନକୁ ଆଧୁନିକ କବିମାନେ ନିଜ ନିଜର କବିତାର ପ୍ରୟୋଗ କରିବାକୁ ଲାଗିଲେ ।

୧୯୪୭ ମସିହା ପରେ ପ୍ରତୀକ, ଚିତ୍ରକଳ୍ପ ଓ ମିଥ୍ ପରି ଆଧୁନିକ ଓଡ଼ିଆ କବିତାରେ ଲୋକଉପାଦାନ ଏକ ମୁଖ୍ୟ ବିଭବ ରୂପେ କବିମାନଙ୍କ ଦ୍ୱାରା ପରିଗଣିତ ହେଇଛି। ୧୯୬୦ ମସିହା ପରେ ପରେ ଲୋକଉପାଦାନକୁ ନେଇ କବିତାରେ ପ୍ରୟୋଗ କରିବା କ୍ଷେତ୍ରରେ କବିମାନେ ପ୍ରାଚୀନ ପରମ୍ପରା, ଲୋକସଂସ୍କୃତି, ଲୋକସାହିତ୍ୟ ଓ ଆଧୁନିକ ସାହିତ୍ୟ ମଧ୍ୟରେ ସଂଯୋଗର ସେତୁ ପାଲଟିଛନ୍ତି । ଏହି ସମୟରେ ଓଡ଼ିଆ କବିତାରେ- ଯୋଗୀ, ସାହାଡ଼ାସୁନ୍ଦରୀ, ପରି, ଭୂତ, ରାଜକୁମାର, ରାଜକୁମାରୀ, ଅସୁରୁଣୀ ଯକ୍ଷ, ସାଧବପୁଅ, କାଠଘୋଡ଼ା ଆଦି ଲୋକସାହିତ୍ୟର ଚରିତ୍ରମାନେ କବିଙ୍କ ଲେଖନିରେ ନୂତନ ଭାବେ ଉଭା  ହୋଇଛନ୍ତି । କବିତାରେ ବିଭିନ୍ନ ମାନବେତର ପ୍ରାଣୀଚରିତ୍ର ମଧ ଲୋକଉପାଦାନର ପ୍ରୟୋଗ ବିବିଧତାକୁ ପ୍ରମାଣିତ କରିଛି ।

କବିତା ପ୍ରତି ପାଠକୀୟ ଶରଧା ସାଉଁଟିବା ପାଇଁ ଆଧୁନିକ କବି ଲୋକବିଶ୍ୱାସ, ଲୋକଚଳଣି ଓ ଲୋକସାହିତ୍ୟକୁ ଦାର୍ଶନକ ଭାବସହ କବିତାରେ ଅବତରଣ କରିବା ସହିତ ଲୋକଉପାଦାନର ସହଯୋଗରେ ସମକାଳୀନ ବାସ୍ତବତାକୁ କବିତାରେ ରୂପଦେଇ କବିତାର ଗଠନ ଶିଳ୍ପକୁ ସୌନ୍ଦର୍ଯ୍ୟ ମଣ୍ଡିତ କରିଛି । ଏହି ସମୟର କବି ପାଶ୍ଚାତ୍ୟ ପ୍ରବଣତାକୁ ଯଥାସାଧ୍ୟ ପରିହାରକରି ନିଜସ୍ୱ ସଂସ୍କୃତିକୁ ଆଦରି ନେଇ ଲୋକଛନ୍ଦ ଓ ଲୋକଭାଷାର ବ୍ୟବହାରରେ କବିତାର ଆବେଦନକୁ ଅଧିକ ସମୃଦ୍ଧ  କରିଛି ।

"ପୁରାଣକଳ୍ପ ପରି ଲୋକଉପାଦାନ ବା ଲୋକଗଳ୍ପର ବ୍ୟବହାର ଷାଠିଏ ପୂର୍ବବର୍ତ୍ତୀ କବିତାରେ କ୍ୱଚିତ ପରିଦୃଷ୍ଟ ହୁଏ। ଲୋକଉପାଦାନର ଉପସ୍ଥିତି ବା ଉପଯୋଗ ଥିଲେ ବି ଏହା ଯଥେଷ୍ଟ ପ୍ରୟୋଗ ମାନ୍ୟତା ପାଇନଥିଲା । ସଂସ୍କୃତ ଭାଷାର କାହାଣୀ ପରମ୍ପରା, ଓଡ଼ିଶାର ଲୋକସାହିତ୍ୟ (ଗୀତ, ଗଳ୍ପ, ନାଟକ ଆଦି), ଲୋକବିଶ୍ୱାସ ଓ ସଂସ୍କୃତି ହିଁ ଓଡ଼ିଆ କବିତାରେ ସାଧନ ବା

ଉପକରଣ ହୋଇଛି । ପାଶ୍ଚାତ୍ୟ ଲୋକକାହାଣୀ ବି ଆଧୁନିକ କବିତାରେ କାଁଭାଁ ପ୍ରୟୋଗ ମାନ୍ୟତା ପାଇଛି ।"(୧)

ଲୋକକାହାଣୀ ଓ ଲୋକାନୁସଙ୍ଗକୁ ନେଇ ଆଧୁନିକ ଓଡ଼ିଆ କବିତା ତା'ର ଶୈଳ୍ପିକ ସୌନ୍ଦର୍ଯ୍ୟକୁ ବୈଚିତ୍ର୍ୟ ମଣ୍ଡିତ କରିଛି । ଲୋକକଥାରୁ ବିଷୟବସ୍ତୁ ଗ୍ରହଣ କରି ଗୁରୁପ୍ରସାଦ ଲେଖିଲେ 'ଚମ୍ପାଫୁଲ' କବିତା । "ଚମ୍ପାଫୁଲ ସ୍ଥୂଳତଃ ରୂପବତୀ ନାରୀର, ସୂକ୍ଷ୍ମତଃ କୁଆଁରୀ ଯୋଚିର ପ୍ରତୀକ ରୂପ । କାମନାର ଉଚ୍ଚାଟନ ଓ ଦେହଜ ଆକର୍ଷଣର ତୀବ୍ରତା ଏତେ ଶକ୍ତିଶାଳୀ ଯେ ଯୋଗୀ ବାଟ ଭୁଲିଯାଏ । ଯୋଗ ଭ୍ରଷ୍ଟ ହୁଏ । କବିତାଟିରେ ଯାଦୁଘର, ରଜାପୁଅ, ରଜାଝିଅ ଆଦିର ଉଲ୍ଲେଖ ଦ୍ୱାରା ଏକ ରୂପକଥାର ପରିବେଶ ସୃଷ୍ଟି ହୋଇଛି ।"(୨)

ଲୋକକାହାଣୀର ରୂପକଥା ପରି ଆଜିର କାମନା କଦର୍ଥ ଯୁବପୀଢ଼ି କାମନା କୁହୁକର କାଉଁରୀ ସ୍ପର୍ଶରେ କିପରି ପରିବର୍ତ୍ତିତ ହୋଇଯାଉଛନ୍ତି ତାହା କବି ଦର୍ଶାଇଛନ୍ତି –

"ଚମ୍ପାଫୁଲ ହାତେଧରି ମନାସିଲା ଯାଦୁକାରୀ ଥରେ
ପଥର ପାଲଟି ହେଲା ରଜାପୁଅ
ହାଡ଼ସବୁ ହେଲା ମୁକ୍ତା ଫୁଲ
ରାଜାଝିଅ ବେଣୀ ଫୁଲ ଖସିଗଲା ସୁଏ ସୁଏ ଭାସି ।"

(ଚମ୍ପାଫୁଲ – ଗୁରୁପ୍ରସାଦ ମହାନ୍ତି)

"କବିତାରେ ଜୀବନାଭିମୁଖୀ ସ୍ୱର ସୃଷ୍ଟିକରି ତହିଁରେ ଗୀତିମୟତା ସୃଷ୍ଟିପାଇଁ କବିମାନେ ନୂତନ କୌଶଳନମାନ ଗ୍ରହଣ କରିଛନ୍ତି । କବିମାନେ ଗତାନୁଗତିକ ଛନ୍ଦ ଗ୍ରହଣ ନ କଲେ ହେଁ ବାକ୍-ଛନ୍ଦ, ଢଗଢ଼ମାଳି, ରୂପକଥା, ଏପରିକି ସମ୍ମୋହନମନ୍ତ୍ର (Charm), ସୋତ୍ର (Chart), ପ୍ରହେଳିକା (Riddle) ପରି ଲୋକମାନ ପ୍ରସୂତ କାବ୍ୟକୌଶଳକୁ ଗ୍ରହଣ କରିଛନ୍ତି ।"(୩) ଉତ୍ତର ଷାଠିଏ ପରବର୍ତ୍ତୀ କାଳରେ କବିମାନେ ଢଗଢ଼ମାଳି, ରୂପକଥା ଓ ପ୍ରହେଳିକା ଆଦି ଲୋକ ପ୍ରସୂତ କାବ୍ୟକୌଶଳକୁ ଗ୍ରହଣ କରିନେଇଛନ୍ତି ସେମାନଙ୍କ କବିତାରେ। କବି ବେଣୁଧର ରାଉତ ତାଙ୍କ କବିତା ସଂକଳନ 'ପିଙ୍ଗଳାର ସୂର୍ଯ୍ୟ' କବିତାର ଆରମ୍ଭରେ ଜଗନ୍ନାଥ ଦାସଙ୍କ ଭାଗବତରେ "ଆମ୍ଭକୁ ଦିଅଇ ଯେ ହରି, ତା ତହୁଁ ଆନ ଇଚ୍ଛାକରି?" ଛନ୍ଦ ଉଦ୍ଧାର କରି? କବିତା ଆରମ୍ଭ କରିଛନ୍ତି । କବି ବେଣୁଧର ରାଉତଙ୍କ 'କାଠଘୋଡ଼ା ପାଣି ପି' କବିତାରେ 'ରୂପକଥା'ର ସମାବେଶରେ ରୀତିମୟତା ସୃଷ୍ଟି ବେଶ୍ ମର୍ମସ୍ପର୍ଶୀ ହୋଇସାରିଛି ।

କାଠଘୋଡ଼ା ପାଣି ପି'ରେ ପାଣି ପି
ରଜାଘର ପୋଖରୀ ଏ, ଜାଣି ପି
ପଦ୍ମରୁ ହୁଏ ଏଠି ବରଷଣ ମଧୁର
ପଦ୍ମରେ ସୁରଭିତ ଏଇ ସର, ସୁଶୀତଳ ମଧୁର
ଜାଣି ପି'ରେ ଜାଣି ପି
କାଠଘୋଡ଼ା ପାଣି ପି ।"

(କାଠଘୋଡ଼ା ପାଣି ପି – ବେଣୁଧର ରାଉତ)

ଉତ୍ତର ଷାଠିଏ କାଳରେ ଆଧୁନିକ କବି ଆଉ ନିର୍ମୂଳିଳଟାରେ ଅରୁନ୍ଧତୀ ତାରାର ଆଲୁଅ ଖୋଜିବାକୁ ଯାଇନାହିଁ, ବରଂ ଏଇ ମାଟିରେ ରହି ମୂଳ ଦୀପଟିଏ ସନ୍ଧାନ ପାଇଛି ସେ । ଲୋକକଥାର ଯୋଗୀ, ରାଜାପୁଅ, ମାଲୁଣୀ, କେଶବତୀ କନ୍ୟା, ତଅପୋଇ, ସାଧବଝିଅର ଉପସ୍ଥିତିକୁ କବିତାର କବିତା କ୍ଷେତ୍ରରେ ଆକର୍ଷଣୀୟ କରିଛି ।

କବି ରମାକାନ୍ତ ରଥଙ୍କ 'ନବଗୁଞ୍ଜର', 'ସମ୍ବନ୍ଧ', 'ବିମାନ ଦୁର୍ଘଟଣାରେ ମୃତ୍ୟୁ' ଆଦି କବିତାରେ ଲୋକଉପାଦାନର ପ୍ରୟୋଗ ଦେଖିବାକୁ ମିଳେ । କବିଙ୍କ 'ନବଗୁଞ୍ଜର' କବିତାରେ ଲୋକଛନ୍ଦର ପ୍ରୟୋଗ କବିତାକୁ ଲଳିତ ତଥା ସୁମଧୁର କରିଥିଲାବେଳେ 'ବିମାନ ଦୁର୍ଘଟଣାର ମୃତ୍ୟୁ' କବିତାରେ ଲୋକ ଚରିତ୍ର 'ଗୋବିନ୍ଦ ଚନ୍ଦ୍ର' ସ୍ଥାନ ପାଇଛି ଏବଂ ଏହି କବିତାରେ ଅତ୍ୟାଚାରିତ ସାନରାଣୀ 'କଞ୍ଚନ ଫୁଲ' ଭାବେ ସତ୍ୟ ବଖାଣିଛି। କବି ରମାକାନ୍ତ ରଥ ତାଙ୍କର 'କେତେ ଦିନର' କବିତା ସଂକଳନର 'ନବଗୁଞ୍ଜର' କବିତାରେ ଲୋକଛନ୍ଦର ପ୍ରୟୋଗ କରିଛନ୍ତି, ଏଠାରେ ଉଲ୍ଲେଖ କରାଯାଇପାରେ -

"ବାୟା ଚଢ଼େଇରେ ବାୟା ଚଢ଼େଇ ତୁ
ଅଗଡାଳେ ତୋର ବସା
ମୋ କୁନି କାନ୍ଦୁଚି ଧାଇଁଆ ଧାଇଁଆ
ତୋ ସାଙ୍ଗେ ଖେଳିବ ପଶା ।"

(ନବଗୁଞ୍ଜର – ରମାକାନ୍ତ ରଥ)

କବି ସୀତାକାନ୍ତ ତାଙ୍କର ବିଭିନ୍ନ କବିତାରେ ଲୋକଉପାଦାନର ସହଯୋଗିତା ଲୋଡ଼ିଛନ୍ତି । 'ଘାସଫୁଲ', 'ଦିନଲିପି', 'କୁକୁଡ଼ା ଲଢ଼େଇ', 'ଆଜି ପୁଣି ଦିଆଲି' ଆଦି କବିତାରେ ଲୋକଉପାଦାନ ଓ ଲୋକଛନ୍ଦର ପ୍ରୟୋଗ କବିତାଗୁଡ଼ିକୁ ସମୃଦ୍ଧ କରିଛି । ୧୯୭୯ ମସିହାରେ ପ୍ରକାଶିତ କବିଙ୍କ 'ଚିତ୍ରନଦୀ' କବିତା ସଂକଳନସ୍ଥ 'ଘାସଫୁଲ' କବିତାରେ ଲୋକଗୀତ ଶୈଳୀରେ ଚମତ୍କାର ପଦ ସଂଯୋଜନା ଦେଖିବାକୁ ମିଳେ । ଯଥା –

"ସେମାନେ ବୋଲିବେ ଗୀତ
ଆସ ଆସ ଘାସଫୁଲ / ମୋ ପିଣ୍ଡାରେ ବସ
ଖାଇବାକୁ ଦେଇ ତୁମକୁ / ହୃଦୟର ରସ
ପିଇବାକୁ ଦେବୁ ତୁମକୁ/ବେଣ୍ଟ ପୋଖରୀର ପାଣି
ଗପୁଥିବୁ, ନାଚୁଥିବୁ ତମ ମନ ଜାଣି ।"

(ଘାସଫୁଲ – ସୀତାକାନ୍ତ ମହାପାତ୍ର)

କବି ଭାନୁଜୀ ରାଓ ଉତ୍ତର ଷାଠିଏ କାଳୀନ ଓଡ଼ିଆ କବିତା କ୍ଷେତ୍ରରେ ଏକ ସଶ୍ରଦ୍ଧ ଉଚ୍ଚାରଣ । ଶ୍ରୀ ରାଓ ତାଙ୍କର କେତକ କବିତାରେ ଲୋକଉପାଦାନକୁ ପୁଞ୍ଜି ଭାବରେ ଗ୍ରହଣ କରିନେଇଛନ୍ତି । ୧୯୯୯ ମସିହାରେ ପ୍ରକାଶିତ କବିଙ୍କ 'ଅନ୍ତର୍ଗତ ସୁଖଦୁଃଖ' କବିତା ସଂକଳନସ୍ଥ 'ଜେମାଦେଇ' କବିତାରେ ଲୋକଗୀତର ପ୍ରଭାବ ସ୍ପଷ୍ଟ ଅନୁମେୟ । "ଆମ ଲୋକଗୀତର ସେଇ ଅଭୁଲା ସ୍ମୃତି ଜେମାଦେଇମାନେ ଏବେବି ଘରେ ଘରେ ଆଖିରୁ ଲୁହ ଝରେଇ ବାହୁନି ବାହୁନି କାନ୍ଦୁଛନ୍ତି । ଯୌତୁକ ଦାବୀ ତତ୍‌କ୍ଷଣାତ୍ ପୂରଣ ନ ହେଲେ ବେଦୀକୁ ବର ଯିବ ନାହିଁ ବୋଲି ବରପିତା ଅଡ଼ିବସନ୍ତି ।

ଦାବୀ ମୁତାବକ ସବୁ ଯୌତୁକ ଜିନିଷ ନିର୍ଦ୍ଦିଷ୍ଟରେ ଆସିଯାଏ ।"(୪) ସେହିପରି 'ବିଷାଦ ଏକ ଋତୁ' କବିତା ସଂକଳନସ୍ଥ 'ସାଧବପୁଅ' କବିତା ପାରଂପରିକ ଲୋକ ଶୈଳୀକୁ ଆପଣାଇ ନେଇଛି । ଏହି କବିତାଟିର ଚମତ୍କାର ଛନ୍ଦ ଯୋଜନା ଓ ଗୀତିମୟତାକୁ ଉଦାହରଣ ମାଧ୍ୟମରେ ଅନୁମାନ କରାଯାଇପାରେ –

"ହେ ସାଧବ୍ରୁ, ତୁମର ବୋଇତ
କେତେ ପାଟ, କେତେ ହାତୀ ଦାନ୍ତ
ଘେନିଯାଏ କେତେ ଦୂର ବାଟ
ପ୍ରିୟା ତୁମ କୃଷ୍ଣଚୂଡ଼ା ଫୁଲ
ହେଇ ଦୂରେ ସୁବର୍ଣ୍ଣ ସିଂହଳ ।"

(ସାଧବ ପୁଅ - ଭାନୁଜୀ ରାଓ)

କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ 'ଝିଅପାଇଁ ଗୋଟିଏ କବିତା'ରେ ବୁଢ଼ୀ ଅସୁରୁଣୀର ଉପମା ଦେଇ ଆଧୁନିକ ସମାଜରେ ନାରୀମାନଙ୍କୁ ବଢ଼ିବାପାଇଁ ସାହସ ଓ ଦମ୍ଭୋକ୍ତି ପ୍ରଦାନ କରିଛନ୍ତି । ସେହିପରି କବିଙ୍କ 'ଷଷ୍ଠ ଚେତନା'ରେ ପାରଂପରିକ ଲୋକଛନ୍ଦର ପ୍ରୟୋଗ ପାଠକଙ୍କ ସାମ୍ନାରେ ନୂଆ ଭାବନାକୁ ଉଜ୍ଜୀବିତ କରିଛି । ଯଥା –

"ପ୍ରଥମେ ବନ୍ଦନା କଲି ବୃନ୍ଦରାଜ ବଟ
ଦ୍ୱିତୀୟେ ବନ୍ଦିଲି ମୁହିଁ ନାଉରୀର ଘାଟ
ଶେଷରେ ବନ୍ଦନା କରେ ଆପଣାର ଘଟ ।"
(ଷଷ୍ଠ ଚେତନା – ରାଜେନ୍ଦ୍ର କିଶୋର ପଣ୍ଡା)

ଲୋକକଥାର ପ୍ରକାଶ୍ୟଭଙ୍ଗୀରେ କବିତା ରଚନା କରିବାରେ କବି ଜୟନ୍ତ ମହାପାତ୍ର ବେଶ୍ ଧୁରନ୍ଧର । ୧୯୯୫ ମସିହାରେ ପ୍ରକାଶିତ ହୁଏ କବିଙ୍କ କବିତା ସଂକଳନ 'କହିବି ଗୋଟିଏ କଥା' । 'କହିବି ଗୋଟିଏ କଥା', 'ଘାସ କଅଁଳିଆ କଥା', 'ନଦୀର କଥା', 'ଆମ ହାଡ଼ିଆଣୀ ମାତା କଥା', 'ଛୁଆଁ ଅଛୁଆଁ କଥା' ଇତ୍ୟାଦି କବିତାର ନାମକରଣ ପଛରେ ଲୋକକଥାର ପ୍ରଭାବ ସ୍ପଷ୍ଟ ଅନୁମେୟ । ଏଠାରେ ଏହାର ଏକ ଉଦାହରଣ ଦିଆଗଲା –

"ଆଜି / ଜାମୁଡାଳି କାହିଁ ଯେ କଥାଟିଏ କହିବି?
ସାତ ସମୁଦ୍ର ପାରି ରାଜକୁମାରୀ କଥା?
ମୋ ବାଡ଼ିପଟ ଜାମୁକୋଳି ଗଛ କଟା ହେଲାଣି
କେବେଠୁଁ / ଶିକାର କରିବାକୁ ଯିବା ରାଜା ଓ
ଆରିସି ସାମ୍ନାରେ ଛିଡ଼ାଥିବା ରାଜା ଝିଅ ବି
ଗଲେଣି କୁଆଡ଼େ ।"
(କହିବି ଗୋଟିଏ କଥା – ଜୟନ୍ତ ମହାପାତ୍ର)

ଲୋକଉପାଦାନ, ଲୋକଗୀତ, ଓଡ଼ିଆ ରଢ଼ି, ପ୍ରବାଦ-ପ୍ରବଚନ ଇତ୍ୟାଦିକୁ ପାଥେୟ କରି କବି ଶରତ ଚନ୍ଦ୍ର ପ୍ରଧାନ ତାଙ୍କ କବିତାକୁ ଏକ ନିଆରା ପରିଚୟ ପ୍ରଦାନ କରିଛନ୍ତି । କବିଙ୍କ 'ଯଯାତି' ଓ 'ନୀଳାଭ ନିମନ୍ତ୍ରଣ' କବିତା ସଂକଳନରେ ଏହି ଧାରାରେ କବିତାଗୁଡ଼ିକ ବେଶ୍ ସାର୍ଥକ ହୋଇପାରିଛି । 'ଉଡ଼ିଗଲା ଗେଣ୍ଡାଳିଆ, ଝାଡ଼ିଦେଲା ପର', 'ଅରଣା ମଇଁଷି ରହିଛି ଅନାଇ/ମଇଁଷିର ପାଖ ନ ଯାଅ ଦନାଇ', 'ରାତି ପାହିଲାଣି ରାବଇ କାଉ/ ଉଠ ଉଠ ମଠ ନ କର ଆଉ', 'ସପୁରି ପାଚିଲା / ମୟୂର ନାଚିଲା', 'ମୋ ଦୋଷ ନାଇଁ', 'ନାଲି ଗୁଲୁଗୁଲୁ ସାଧବ ବୋହୂ', 'ଝୁଲୁରେ ହାତୀ ଝୁଲୁ / ବାଆ ପାଣି ଖାଇ ଫୁଲୁ' ପ୍ରଭୃତି ବହୁ ପ୍ରଚଳିତ ଲୋକଗୀତକୁ ମୂଳାଧାର କରି କବିତା ରଚନାରେ କବି ସ୍ୱତନ୍ତ୍ର ଏକ ନୂତନ ଶୈଳୀର ପ୍ରଚଳନ କରିଛନ୍ତି ।(୫)

କବି ଶରତ ଚନ୍ଦ୍ରଙ୍କ କବିତାରେ ଲୋକଉପାଦାନଗୁଡ଼ିକ ଅତି ମନୋରମ ଶୈଳୀରେ ବର୍ଣ୍ଣିତ ହୋଇଥିବାର ଦେଖାଯାଏ । ଏଠାରେ 'ଯଯାତି' କବିତା ସଂକଳନକୁ ଏକ ଉଦାହରଣ ଦିଆଯାଇପାରେ- –

"ମଦରଙ୍ଗା ଶାଗ ରାଇ
ତୁମେ ହୋଇଗଲ
ରାଇ ବିନୋଦିନୀ
ଲମ୍ବିଯାଏ / ମୋର ଛାଇ ।
X x x
ପାଣିରେ କାଟିଲି ଗାର
ଗୋଟିଏ ମନରେ
କୋଟିଏ ଆକାଶ
ଯଯାତି ମୁଁ
ଜାତି ସ୍ମର ହୋ
ହୁଏ ଆଜି ସାତପର ।"

(ଯଯାତି – ଶରତ ଚନ୍ଦ୍ର ପ୍ରଧାନ)

କବି ଦୀପକ ମିଶ୍ରଙ୍କ କବିତାରେ ଲୋକଉପାଦାନର ପ୍ରୟୋଗ ପରିମାଣ ଦୃଷ୍ଟିରୁ କମ୍ ହେଲେ ହେଁ ଗୁଣାତ୍ମକ ଦୃଷ୍ଟିରୁ ସ୍ୱତନ୍ତ୍ର । କବିଙ୍କ 'ଅରଣା ମଇଁଷି' ଓ 'ମଧ୍ୟାହ୍ନର ଛାଇ' କବିତାରେ ଏହାର ପ୍ରୟୋଗ ଲକ୍ଷ୍ୟ କରାଯାଇପାରେ । ୧୯୯୪ ମସିହାରେ ପ୍ରକାଶିତ ହୁଏ କବିଙ୍କ 'ରକ୍' କବିତା ସଂକଳନ । "'କାଲ ଆଗରେ ମୂଳା ଚୋବାଇବା', 'ଧୀର ପାଣି ପଥର କାଟେ', 'କଥା ମାଜିଲେ ସୂତା ମାଜିଲେ ସରୁ', 'ଠାକୁର ଘରେ କିଏ ନା ମୁଁ କଦଳୀ ଖାଇନି', 'ବର୍ଷା ଯୁଆଡ଼େ ଛତା ସିଆଡ଼େ', 'ନାଆ ପେଲି ଦେଲି କଲିକତାକୁ', 'ହିଂସା ପ୍ରଣୋଦିତ ତରବାରୀର ଜୟ ନୁହେଁ' – ଏସବୁ ଲୋକବାଣୀକୁ କବିତାରେ ସଂପ୍ରସାରଣ କଲାବେଳେ କାବ୍ୟିକ ସଫଳତା ଦୂରବର୍ତ୍ତୀ ହୋଇଯାଇଛି ଓ ତାଙ୍କ କବିତାର ଅବକ୍ଷୟକୁ ସୂଚାଇ ଦେଉଛି। କିନ୍ତୁ କେତୋଟି 'ରକ୍'ରେ ଭାବସାନ୍ଦ୍ରତା ଖୁବ୍ ସ୍ଥିତିସ୍ଥାପକ ଭାବେ କାବ୍ୟଚେତନାକୁ ସଂପ୍ରସାରିତ କରିରଖିଛି ।"(୬)

ଉତ୍ତର ଷାଠିଏ କାଳରେ କବି ପ୍ରସନ୍ନ କୁମାର ମିଶ୍ରଙ୍କ 'ଆ ପକ୍ଷୀ ଫେରିଆ', 'ଦୁଃଖ କୋଇଲି', 'ଟ୍ରକ୍ ଡାଲାରେ ସନାତନ' ଆଦି କବିତାରେ ଲୋକଉପାଦାନର ବ୍ୟବହାର ଦେଖିବାକୁ ମିଳେ । କବିଙ୍କ 'ଆ ପକ୍ଷୀ ଫେରିଆ' କବିତାରେ ବର୍ଣ୍ଣିତ ଅସୁରୁଣୀକୁ ସହରୀ ଯାନ୍ତ୍ରିକ ସଭ୍ୟତାର ସହ ତୁଳନା କଲାବେଳେ 'ଦୁଃଖ କୋଇଲି' ଆମ ପରଂପରାକୁ ସ୍ମରଣ କରାଇଦିଏ ଏବଂ 'ଟ୍ରକ୍ ବାଲାରେ ସନାତନ' କବିତାରେ ଗ୍ରାମ୍ୟ କାହାଣୀରେ ବର୍ଣ୍ଣିତ ଶୁଆ-ଶାରୀ ମାଧ୍ୟମରେ କବି ଲୋକକଥାର ପ୍ରୟୋଗ କରି ସନାତନର ଅସହାୟତା ଓ ଅପରାଗତାର ସୂଚନା ଦେଇଥାନ୍ତି; ଯଥା –

"ଶୁଆ ପଚାରିବ ଶାରୀଲୋ କହନି -

ଏ ମରିବ ନା ବଂଚିବ?
ଶାରୀ କହିବ – ଶୁଆରେ
ଯେ ମରିବ... ମରିବ... ମରିବ
ମରିଲେ ଯାଇ ଯେ ତରିବ ।"

(ଟ୍ରକ୍ ଡାଲାରେ ସନାତନ - ପ୍ରସନ୍ନ କୁମାର ମିଶ୍ର)

କବି ସୌଭାଗ୍ୟ କୁମାର ମିଶ୍ରଙ୍କ 'ହୃଦୟେଶ୍ୱରୀ' ଓ 'ବାନର ମକର କଥା' କବିତାରେ ଅତି ଶାଣିତ ଭାବରେ ଲୋକଶୈଳୀର ପ୍ରୟୋଗ କରିଛନ୍ତି । 'ହୃଦୟେଶ୍ୱରୀ' କବିତାରେ ଲୋକଛନ୍ଦର ଗୀତିମୟତା ଦେଖିବାକୁ ମିଳିଥିଲାବେଳେ 'ବାନର ମକର କଥା'ରେ ମାଙ୍କଡ଼-କୁମ୍ଭୀର ଲୋକକଥାଟିର ପ୍ରତାରଣାଗତ ସତ୍ୟର ଆଧୁନିକ ଶୈଳୀରେ ଉନ୍ମୋଚିତ ହୋଇଛି ।

ଉତ୍ତର ଷାଠିଏ କାଳରେ କବି ସୁରେଶ ପରିଡ଼ାଙ୍କ 'ରାଜଜେମା ଓ ଚିତ୍ରକର କଥା'ରେ ଅଚରିତାର୍ଥ ପ୍ରେମ ପ୍ରସଙ୍ଗର ଅବତାରଣା କରାଯାଇଛି । ଓଡ଼ିଶାର ପୁରପଲ୍ଲୀରେ ପ୍ରଚଳିତ 'ମିଛୁଆ ରାଧୁଆ' ଲୋକକଥାଟିକୁ ଉପଜୀବ୍ୟକୁ କବି ଶୈଳଜ ରବିଙ୍କ କବିତା 'ମିଛୁଆ ଗାଇଆଳ ଟୋକା ମଲାପୂର୍ବରୁ ଗାଇଥିବା ଗୀତ'ର ବକ୍ତବ୍ୟରେ ବାସ୍ତବ ଜୀବନର ଉପଲବ୍ଧି ଓ ମୋହଗ୍ରସ୍ତ ମଣିଷର ମିଛମାୟା ସଂସାରରେ ମିଥ୍ୟା ପ୍ରବଣତା ପ୍ରକାଶିତ ହୋଇଛି । କବିଙ୍କ ଭାଷାରେ -

"ସଂସାରଟା ଛଟାଗଲା
ମିଛବାଘ, ମିଛ ଗାଈ, ମିଛରେ ଚିଲାର
ସଂସାରଟା କୁତୁରୁ କାଳିଆ
ବୁଜ୍‌ବୁଜ୍ ଠୋଠା ସୁଖ କ୍ଷଣକର
ମୋତେ ପଛେ ବାଘ ଖାଉ
ସତ୍ୟ ରକ୍ଷା ହେଉ ।"

(ମିଛୁଆ ଗାଇଆଳ ଟୋକା ମଲା ପୂର୍ବରୁ ଗାଇଥିବା ଗୀତ – ଶୈଳଜ ରବି)

"ଲୋକ ଚରିତ୍ର, ଲୋକ ପରିବେଶ, ଲୋକ ଜଗତକୁ ଆଶ୍ରୟ କରି ଲୋକଗୀତ ଶୈଳୀରେ ଉତ୍ତର ଆଧୁନିକ କବି ଅନେକ କବିତା ରଚନା କରୁଛି । ବାସ୍ତବଧର୍ମୀ ବର୍ଣ୍ଣନା ସହ ଅତି କଳ୍ପନା, ଅଲୌକିକତା, କୁହୁକ ବାସ୍ତବତା, ପରୀକଥା, ଲୋକସଂସ୍କୃତି ଓ ଲୋକଉପାଦାନ ଉପରେ ଗୁରୁତ୍ୱ ଆରୋପ କରୁଛି ।"(୭)

କବି ବ୍ରହ୍ମାନନ୍ଦ ଦାସଙ୍କ କବିତା 'କେନ୍ଦରା', 'ବାଘ ଓ ବଉଳାଗାଈ' ମଧ୍ୟ ଲୋକଉପାଦାନର ପ୍ରୟୋଗ ଦେଖିବାକୁ ମିଳେ । କବିଙ୍କ 'ଘର କେଉଁଠି' କବିତାରୁ ଲୋକ ଶୈଳୀର ପାରଂପରିକ ରୂପ ଅତି ନିଖୁଣ ଭାବେ ପ୍ରକାଶ ଲାଭ କରଛି ।

"ଏ ଝିଅଟି ଘର କେଉଁଠି / ପାଇକପୁର ପାଇକପୁର
କି ପାଇକପୁର ଓ ତୁ ପାଇକ / କିଏ ତୁ, ବଜ୍ରବାଡ଼
କି ବଜ୍ର, କାଳ ବଜ୍ର / ଭାଙ୍ଗିଦିଏ କେତେ ରାଜାର ଘମଟ
ତା' ପାଚେରି, ଦୁର୍ଗ, ଗଡ଼ ।"

(ଘର କେଉଁଠି – ବ୍ରହ୍ମାନନ୍ଦ ଦାସ)

"ଜୀବନ ଓ ଜଗତ ପ୍ରତି ଆଧୁନିକ କାବ୍ୟଦୃଷ୍ଟିର ବ୍ୟଞ୍ଜନା ପକ୍ଷରେ ଲୋକକଳ୍ପ ଓ ଇତିହାସ କଳ୍ପର ସାମର୍ଥ୍ୟ କିଛି କମ୍ ନୁହେଁ । ଲୋକକଥାର ବିପୁଳ ଭଣ୍ଡାର ଏବଂ ଇତିହାସର ଅନେକ ରୋମାଞ୍ଚ ମୁହୂର୍ତ୍ତ ବିଭିନ୍ନ ପ୍ରସଙ୍ଗରେ ସ୍ମରଣକୁ ଆସିଥାଏ । ତାହାହିଁ ଦିଲୀପ ଦାସଙ୍କୁ ଉତ୍ସାହିତ କରିଛି । ସେଥିରୁ କେତେକ ଅନୁଷଙ୍ଗ ସୁନିର୍ବାଚିତ ହୋଇ ତାଙ୍କ କବିତାରେ ପ୍ରସଙ୍ଗୋଚ୍ଥିତ ଭାବେ ସ୍ଥାନ ପାଇଛି । ରଜାପୁଅ, ମନ୍ତ୍ରୀପୁଅ, କାଠଘୋଡ଼ା, ବୁଢ଼ୀ ଅସୁରୁଣୀ, ହୀରାବତୀ ନାରୀ ପ୍ରଭୃତି ଆମ ଲୋକକଥାର ପ୍ରଧାନ ବିନ୍ଦୁ । ଏଗୁଡ଼ିକର ନବନ୍ୟାସ କରି ଦିଲୀପ ଦାସ ଆଧୁନିକ କାବ୍ୟଜିଜ୍ଞାସାର ଅନୁଷଙ୍ଗ ରୂପେ ପ୍ରୟୋଗ କରିଛନ୍ତି ।" (୮)

ଲୋକକାହାଣୀର ଭାନୁମତୀ ପେଡ଼ି, ଆଶ୍ଚର୍ଯ୍ୟ ପ୍ରଦୀପ, ଇନ୍ଦ୍ରନୀଳ ସୁରମ୍ୟ ପ୍ରସାଦ, ଆସ୍‌ମାନୀ ପରିରାଇଜ ପ୍ରଭୃତିକୁ ଏକାଧିକ ବାର କବି ତାଙ୍କ କବିତାରେ ବ୍ୟବହାର କରିଛନ୍ତି । କବିଙ୍କ 'ବିଲୁପ୍ତ ସାମ୍ରାଜ୍ୟ' କବିତା ସଂକଳନସ୍ଥ 'ପ୍ରଥମ ସ୍ୱପ୍ନ' ଏବଂ 'ବୁଡ଼ିଯାଉଥିବା ଦେଶ' କବିତା ସଂକଳନସ୍ଥ 'ବିଭକ୍ତି' କବିତାରେ ଲୋକଶୈଳୀର ଚମତ୍କାର ଉପଯୋଗ ଦେଖିବାକୁ ମିଳେ ।

"ତଥାପି କାମନା ଜାଗେ ସାତତାଳ ପାଣି କାଟି
ଭଅଁରର ଗଳାଚିପି ସୁନା ଫରୁଆରେ
ସୁନେଲି ମାଛଟେ ହୋଇଯାଆନ୍ତି ପହଁରି
ନୀଳନୀଳ / ଘନନୀଳ ସେ ସପନପୁରୀ ।"

(ପ୍ରଥମ ସ୍ୱପ୍ନ – ବିଲୁପ୍ତ ସାମ୍ରାଜ୍ୟ - ଦିଲୀପ ଦାସ)

କବି ହରପ୍ରସାଦ ଦାସ ମଧ୍ୟ ତାଙ୍କ କବିତାରେ ଲୋକଉପାଦାନ ପ୍ରୟୋଗ କରିବାର ମୋହକୁ ସମ୍ବରଣ କରିପାରିନାହାନ୍ତି । କବିଙ୍କ 'ଖୁଣୀ ଅପସରା' କବିତା ସଂକଳନର ନାମକରଣରେ ଲୋକକଥାଟି ସଂଜଡ଼ିତ ଏବଂ 'ଗର୍ଭଗୃହ' କବିତା ସଂକଳନରେ ମଧ୍ୟ ଲୋକଉପାଦାନର ପ୍ରୟୋଗ ଅତି ମନୋରମ ଶୈଳୀରେ ବ୍ୟବହୃତ ହୋଇଥିବାର ଦେଖାଯାଏ । କବିଙ୍କ ଗର୍ଭଗୃହ କବିତା ସଂକଳନର 'ରୂପକଥା' କବିତାରୁ ଲୋକକଥା ଶୈଳୀଟି କିପରି କବି ଲେଖନୀରେ ରୂପାୟିତ ହୋଇଛି ଏକ ଉଦାହରଣ ମାଧ୍ୟମରେ ଓ ଅନୁମେୟ କରାଯାଇପାରେ –

"ରାତିକ ଭିତରେ / ଆଖି ବାଳରେ
କିଏ ସେ ବୁଣିଲା / ବାଟ ଚାହିଁବାର ସହସ୍ର ପାଟ
ସସାଗରା ଧରା / ଶୁଖିଗଲା ବେଳେ
କୋଉଠି ଥିଲା / କାହା ପଛେ ପଛେ
ଧାଇଁ ଧାଇଁ ଗଲା / କସ୍ତୁରୀ ବେଣ୍ଟ ।"

(ରୂପକଥା – ଗର୍ଭଗୃହ – ହରପ୍ରସାଦ ଦାସ)

ଉତ୍ତର ଷାଠିଏ କାଳରେ ପ୍ରକାଶ ପାଏ କବି ପ୍ରତିଭା ଶତପଥୀଙ୍କ ଲୋକକଥାର କାଳ୍ପନିକତା ଉପରେ ପର୍ଯ୍ୟବେସିତ କବିତା ସଂକଳନ 'ସାହାଡ଼ା ସୁନ୍ଦରୀ' । ସାହାଡ଼ା ସୁନ୍ଦରୀର ବାସସ୍ଥାନ ହେଉଛି ସାହାଡ଼ା ବୃକ୍ଷର ଗଣ୍ଡି । ସାହାଡ଼ା ସୁନ୍ଦରୀରୂପୀ କିଶୋରୀମାନଙ୍କ ରଙ୍ଗୀନ୍ ଭବିଷ୍ୟତ ହାତକୁ ଦି'ହାତ ହୋଇ ସଂସାର କରିଲାପରେ ତା'ର ଜୀବନ କୌତୁହଳ ଭିତରେ ଶିଶୁର କଅଁଳ ହାତରେ କଲବଲ ହେଉଥିବା କଙ୍କିର ଅବସ୍ଥାଠାରୁ ଅଲଗା ନୁହେଁ ।

ସେହିପରି କବିଙ୍କ 'କିଆ ଫୁଟିଚି' ଓ 'ପରୀ ସାଙ୍ଗେ ଦିନେ' କବିତା ଦ୍ୱୟ ମଧ୍ୟ ଲୋକଉପାଦାନ ଆଶ୍ରିତ ।

କବି ଦେବଦାସ ଛୋଟରାୟଙ୍କ 'ନୀଳ ସରସ୍ୱତୀ' ଓ 'ହାତୀ ସଜ କର' କବିତା ସଂକଳନ ଦ୍ୱୟର କେତେକ କବିତାରେ ଲୋକକଥାର ପ୍ରଭାବ ସ୍ପଷ୍ଟ । 'ନୀଳ ସରସ୍ୱତୀ' କବିତା ସଂକଳନର ତୃତୀୟ ସ୍ତବକ ହେଉଛି 'ଅନ୍ତର୍ଗତ ଦୁଃଖ'। 'ଅନ୍ତର୍ଗତ ଦୁଃଖ'ର ପ୍ରଥମ କବିତା 'ଅବୋଲକରା' । ଉକ୍ତ କବିତାରେ ସାଂପ୍ରତିକ ସମୟର ଜୀବନ ଯନ୍ତ୍ରଣାରେ ଜର୍ଜରିତ ମଣିଷର କରୁଣ ଚିତ୍ର 'ଅବୋଲକରା' ଚରିତ୍ର ମାଧ୍ୟମରେ ଝଲସିତ ହୋଇଛି । ସାଆନ୍ତଙ୍କୁ ବିଶ୍ୱାସ କରି ଅବୋଲକରା ଯେମିତିକୁ ସେମିତି ପଡ଼ିରହିଛି । ପୂତନା କ୍ଷୀରରେ ମିଶିଯାଇଛି ବିଷ, ରାଜାପୁଅ ମୁହୂର୍ତ୍ତକେ ପାଲଟିଯାଇଛି ମେଣ୍ଢା । ବଦଳିଯାଉଛି ମଣିଷ ଓ ମାନସିକତା । ସବୁ ପରେ ବି ଦୃଢ଼ ବିଶ୍ୱାସ, ଗଭୀର ଆଶା ଓ ଆକାଙ୍କ୍ଷାକୁ ଧରି ଅବୋଲକରା ପ୍ରତୀକ୍ଷା କରିଛି ଏକ ସ୍ୱପ୍ନିଳ ସମୟକୁ । ଅବୋଲକରା କହିଛି–

"ତମେ ସବୁ ଗଲେ ଯାଅ ମୁଁ ଏଠାରେ ଅକ୍ଷିତ ଭଣ୍ଡାରି
ତଥାପି ପୋତିବି ଛତା । ସ୍ମୃତି ଏବଂ ଲୁହର ମଶାରୀ
ବୁଣିବି ତା କୁଢ଼ିଧରି କୁହୁଡ଼ି ଓ ବିଶ୍ୱାସ ମିଶାଇ
ବନାଇବି ତମ୍ବୁ ଏକ ପଞ୍ଜରାକୁ କରିବି ସାରଙ୍ଗୀ
ଶୋଇଯିବେ ଗାଁଲୋକେ ଓସ୍ତଗଛ ନଦୀ ଓ ଝିଙ୍କାରି ।"

(ଅବୋଲକରା – ଦେବଦାସ ଛୋଟରାୟ)

କବି ହୃଷୀକେଶ ମଲ୍ଲିକ ପ୍ରାଚୀନ ଲୋକକାହାଣୀ ଓ ଲୋକଗୀତର ପ୍ରସଙ୍ଗଗୁଡ଼ିକୁ ସମକାଳୀନତା ସହ ଯୋଡ଼ି ଆଧୁନିକ ଓଡ଼ିଆ କବିତାକୁ ନବବିନ୍ୟାସ ଦିଅନ୍ତି । କବିଙ୍କ 'ଧାନ ସାଉଁଟା ଝିଅ' ଓ 'ଉଜୁଡ଼ା କ୍ଷେତର ଗୀତ' କବିତା ଗ୍ରନ୍ଥର କେତେକ କବିତାରେ ଲୋକ ଚରିତ୍ରମାନେ ସ୍ଥାନ ପାଇଛନ୍ତି । କବିଙ୍କ 'ଉଜୁଡ଼ା କ୍ଷେତର ଗୀତ'ରେ 'ଖରାବେଳ' ଓ 'କ୍ଷେତୁଆଳ'ର ଲୋକଶୈଳୀରେ ଆଳାପଚାରିତା ବା ପାରସ୍ପରିକ କଥୋପକଥନ ଭଙ୍ଗୀକୁ ଏଠାରେ ଲକ୍ଷ୍ୟ କରାଯାଇପାରେ ।

"ଏଥୁ ଅନ୍ତେ
ଖରାବେଳ ପଚାରଇରେ କ୍ଷେତୁଆଳ! କି ଫୁଲ ବାସୁଚି
ଏଡ଼େ ମହମହ ହେଇ
କ୍ଷେତୁଆଳ ଉତ୍ତରଇ, ଓସ୍ତଗଛ କୋରଡ଼ରେ
ଭାଙ୍ଗିଗଲା ମହୁର ସୁରେଇ ।
ଖରାବେଳ ପଚାରଇରେ କ୍ଷେତୁଆଳ!
ଶୂନ୍‌ଶାନ୍ ମାଟିବିଲେ କିଏ କାନ୍ଦେ ଏଡ଼େ କୁଇହୋଇ
କ୍ଷେତୁଆଳ ଉତ୍ତରଇ, ପିଛିଲା ଦିନର ଗୀତ
ଯୋଗୀ ଗାଏ କେନ୍ଦରା ବଜେଇ ।"

(ଉଜୁଡ଼ା କ୍ଷେତର ଗୀତ – ହୃଷୀକେଶ ମଲ୍ଲିକ)

୧୯୬୦ ମସିହା ପରବର୍ତ୍ତୀ ସମୟରେ ଲୋକଶୈଳୀକୁ କବିତାରେ ଆପଣାଇ ନେଇଥିବା ଅନ୍ୟତମ କବି ହେଉଛନ୍ତି ଆଶୁତୋଷ ପରିଡ଼ା । କବିଙ୍କ 'କଙ୍କକାହାଣ', 'ମୂର୍ଖ କାଠୁରିଆ କଥା','ନବଗୁଞ୍ଜର' ଆଦି କବିତାମାନଙ୍କରେ ଲୋକକାହାଣୀରେ ନୂତନ ବିନ୍ୟାସ ଦେଖିବାକୁ ମିଳେ । ସେହିପରି କବି ଶତ୍ରୁଘ୍ନ ପାଣ୍ଡବଙ୍କ 'କେନ୍ଦରା', 'ବଳିକଥା', 'କସ୍ତୁରୀମୃଗ କଥା', 'ଅରଣ୍ୟ ଅଜଗର କଥା', 'ମୃଗୁଣୀ ସ୍ତୁତି' ଆଦି କବିତାର ଅଭିବ୍ୟକ୍ତି ଲୋକକାହାଣୀର ପ୍ରଭାବକୁ ଆରୋପିତ କରେ ।

କବି ହୁସେନ୍ ରବି ଗାନ୍ଧୀ ତାଙ୍କ କବିତା ଗ୍ରନ୍ଥର ନାମ ଖେଳି 'ଲୋକଗୀତ' । "କବି ହୁସେନ୍ ରବି ଗାନ୍ଧୀ 'ଲୋକଗୀତ' ମାଧ୍ୟମରେ ସାଧାରଣ ମଣିଷର କଷଣ, କାମନାର ଚିତ୍ର ଉତ୍ତୋଳନ କରିଛନ୍ତି । ସମାଜରେ ସର୍ବସାମ୍ୟ ପ୍ରତିଷ୍ଠାପାଇଁ କବିତାରେ ଯେତେ ଶୋଣିତ ସଂଗ୍ରାମ ସୃଷ୍ଟି ହୋଇଛି କବି ସେଥିରେ ଆଉ ଏକ ଲୋହିତ ସ୍ୱାକ୍ଷର ।"(୯) ବାସ୍ତବରେ କବିଙ୍କର 'ଲୋକଗୀତ' କବିତା ସଂକଳନକୁ ଆଲୋଚନାର ପରିସରଭୁକ୍ତ କଲେ । ଲୋକଗୀତ ଯେ ସରଳ ଓ ସୁବୋଧ ଭାଷାରେ ରଚିତ ହୋଇ ଲୋକଛନ୍ଦକୁ ପୁନର୍ଜୀବିତ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସାଂପ୍ରତିକ କବିତାରେ ଲୋକଉପାଦାନକୁ ନେଇ ଅନେକ ସାଂସ୍କୃତିକ ଚର୍ଚ୍ଚା ଚାଲିଥିଲାବେଳେ କବି ମନୋରମା ବିଶ୍ୱାଳ ମହାପାତ୍ରଙ୍କ କବିତାରେ ଲୋକଉପାଦାନ ଓ ଲୋକସଂସ୍କୃତି ଏକ ପ୍ରମୁଖ ବିଷୟ ରୂପେ ପ୍ରତିଭାତ ହୁଏ । କବିଙ୍କ 'ସାନଭାଇ', 'ନୋକଲ ପିନ୍ଧା ମୁହଁ' ଆଦି କବିତାରେ ଲୋକକଥାର ବର୍ଣ୍ଣନା କବିତାଗୁଡ଼ିକୁ ଆକର୍ଷଣୀୟ କରିଛି । ଲୋକକଥାର କଞ୍ଚନ ଗଛକୁ ଆଣି 'ସାନଭାଇ' ଶିରୋନାମାରେ କବି ସ୍ଥାନିତ କରିଛନ୍ତି । ସାନଭାଇର ସ୍ନେହ, ଶ୍ରଦ୍ଧା, ସଂପର୍କ ମମତ୍ୱବୋଧକୁ କଞ୍ଚନ ଗଛ ସହ ଯେପରି ତୁଳନା କରାଯାଇଛି ତାହା ପାଠକୀୟ ଆଦୃତି ଲାଭ କରିପାରିଛି । ଯଥା –

"ଲୋକକଥାର ସେଇ କଞ୍ଚନ ଗଛ ମୁଁ
ତମ ସାନଭାଇ
ଯାହା ମାଗୁଛ ମାଗ
ସବୁ ଦେଇଯିବି
ରକ୍ତ ମାଗିଲେ ରକ୍ତ ଦେବି
ଜୀବନ ମାଗିଲେ
ଜୀବନ ଦେବି ।
ଈଶ୍ୱରଙ୍କୁ କେବଳ ଗୋଟିଏ କଥା
ମାଗିଥିଲି
ଲୋକକଥାର କଞ୍ଚନ ଗଛ ହେବା ପାଇଁ ।"

(ସାନଭାଇ – ମନୋରମା ବିଶ୍ୱାଳ ମହାପାତ୍ର)

ଉତ୍ତର ଷାଠିଏ କାଳନୀ ଓଡ଼ିଆ କବିତାରେ ଲୋକଭାଷାର ସରସ ଓ ସ୍ୱଚ୍ଛନ୍ଦ ସମାବେଶ ଦେଖିବାକୁ ମିଳୁଥିଲାବେଳେ ଲୋକୋକ୍ତିର କାବ୍ୟିକ ପ୍ରୟୋଗ ଏ ସମୟର କବିତାଗୁଡ଼ିକୁ ସାର୍ଥକ ମଣ୍ଡିତ କରିଛି । ପ୍ରଚଳିତ ଲୋକଗୀତ, ଲୋକକାହାଣୀ, ଢଗଢମାଳି, ପହେଳି ଉକ୍ତି ସମନ୍ୱିତ ଜୀବନ୍ତ ଭାଷା କବିମାନଙ୍କ ଉପରେ ପ୍ରଭାବ ବିସ୍ତାର କରିଛି । ଏହି ସମୟର କବିତାରେ ଲୋକମାନଙ୍କ ମଧ୍ୟରେ ପ୍ରଚଳିତ ବହୁ ଲୋକପ୍ରିୟ ଲୋକଛନ୍ଦକୁ ମଧ୍ୟ କବିମାନେ ଆପଣାଇ ନେଇଛନ୍ତି । "ଉତ୍ତର ଆଧୁନିକ କବିତା ମୌଖିକ ଐତିହ୍ୟ ଉପରେ ବିଶେଷ ଗୁରୁତ୍ୱାରୋପ କରେ । ଲୋକକଥା, କୁହୁକ,

ଲୋକଗୀତ, ଲୋକନାଟ୍ୟ, ଲୋକ ମହୋତ୍ସବର ବହୁ ଉପାଦାନ ଏସବୁ କବିତାରେ କବି ଧରି ରଖିବାକୁ ଚେଷ୍ଟା କରେ ଓ ଜାତିର ପ୍ରାଣୋଚ୍ଛ୍ୱାସ ଉପରେ ଗୁରୁତ୍ୱାରୋପ କରେ । ଏପରିକି ଲୋକ ବ୍ୟବହୃତ ନିପଟ ଗାଉଁଲି ଶବ୍ଦ ଉପରେ ଏ କବିତା ବିଶେଷ ପ୍ରାଧାନ୍ୟ ଦିଏ । ଏଇ ସମୟର କବିଙ୍କର ଦେଶଜ ସଂସ୍କୃତି, ଜନଜାତି ସଂସ୍କୃତି, ଆମର ପୁରାଣ କଳ୍ପ, ସ୍ଥାନୀୟତା ଏବଂ ଆଞ୍ଚଳିକ ଭାଷାର ଉପାଦାନ ପ୍ରଚୁର ।"(୧୦) ଲୋକବିହୀନ ସମାଜର ସ୍ଥିତି ଯେପରି ସମ୍ଭବ ନୁହେଁ ଠିକ୍ ସେପରି ଲୋକସାହିତ୍ୟକୁ ଛାଡ଼ି ବିଦଗ୍ଧ ସାହିତ୍ୟ ସୃଷ୍ଟି କରିବା ମଧ୍ୟ ସହଜ ନୁହେଁ, ଏହା ଅନୁଭବ କରି ବହୁ କବି ଭାଷା, ଶବ୍ଦ ପ୍ରୟୋଗ, ଶୈଳୀ ଦୃଷ୍ଟିରୁ ତାଙ୍କ କୃତିକୁ ଲୋକଧର୍ମୀ କରିବାରେ ପ୍ରୟାସ କରୁଛନ୍ତି ।

## ସହାୟକ ଗ୍ରନ୍ଥସୂଚୀ

୧. ପାଣ୍ଡବ, ଶତ୍ରୁଘ୍ନ : ଆଧୁନିକ ଓଡ଼ିଆ କବିତା ସମୀକ୍ଷଣ, ପ୍ରଥମ ସଂସ୍କରଣ, ନବୋଦୟ ପ୍ରକାଶନ, ବାଲୁବଜାର, କଟକ-୨, ୨୦୦୯, ପୃ.୫୯

୨. ପାଣ୍ଡବ, ଶତ୍ରୁଘ୍ନ : ଆଧୁନିକ ଓଡ଼ିଆ କବିତା ସମୀକ୍ଷଣ, ପ୍ରଥମ ସଂସ୍କରଣ, ନବୋଦୟ ପ୍ରକାଶନ, ବାଲୁବଜାର, କଟକ-୨, ୨୦୦୯, ପୃ.୩୮

୩. ପ୍ରଧାନ, ଶରତଚନ୍ଦ୍ର : ଆଧୁନିକ ଓଡ଼ିଆ କବିତାରେ ଗୀତିଧର୍ମିତା, ଆଧୁନିକ କବିତାର ଦିଗ୍‌ଦର୍ଶନ, ସଂ. ଅପୂର୍ବ ରଂଜନ ରାୟ, ତୃତୀୟ ସଂସ୍କରଣ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ, ପୃ.୧୧୧

୪. ଶତପଥୀ, ନିତ୍ୟାନନ୍ଦ : ସତୁରୀରୁ ସହସ୍ରାବ୍ଦୀ, ଦ୍ୱିତୀୟ ସଂସ୍କରଣ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ବିନୋଦବିହାରୀ, କଟକ, ୨୦୧୦, ପୃ.୮୩

୫. ଦାସ, ସୁଲୋଚନା / ପ୍ରଧାନ, ଶରତଚନ୍ଦ୍ର : ସାଂପ୍ରତିକ କବି ଓ କବିତା, ଦ୍ୱିତୀୟ ଭାଗ, ସଂ. ଡ. ହେମନ୍ତ କୁମାର ଦାସ, ଡ. ରଞ୍ଜିତା ନାୟକ, ଡ. ପ୍ରସନ୍ନ କୁମାର ସ୍ୱାଇଁ, ପ୍ରଥମ ସଂସ୍କରଣ, ଓଡ଼ିଶା ବୁକ୍ ଷ୍ଟୋର, କଟକ, ୨୦୦୪, ପୃ.୧୧୧

୬. ଶତପଥୀ, ନିତ୍ୟାନନ୍ଦ : ସତୁରୀରୁ ସହସ୍ରାବ୍ଦୀ, ଦ୍ୱିତୀୟ ସଂସ୍କରଣ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ବିନୋଦବିହାରୀ, କଟକ, ୨୦୧୦, ପୃ.୪୭୨/୪୭୩

୭. ବେହେରା, ହରିଶ୍ଚନ୍ଦ୍ର : ଆଧୁନିକତା ବନାମ ଉତ୍ତର ଆଧୁନକତା : ଏକ ବିଚାର ବିମର୍ଶ, କାବ୍ୟଲୋକ, ସଂ. ଭିକାରୀ ଧଳ, ପଞ୍ଚଦଶ ବର୍ଷ, ଚତୁର୍ଥ ସଂଖ୍ୟା – ୨୦୧୧

୮. ସାମନ୍ତ, କମ୍ବୁପାଣି / ଦାସ, ଦିଲୀପ : ସାଂପ୍ରତିକ କବି ଓ କବିତା, ଦ୍ୱିତୀୟ ଭାଗ, ସଂ. ଡ. ହେମନ୍ତ କୁମାର ଦାସ, ଡ. ରଞ୍ଜିତା ନାୟକ, ଡ. ପ୍ରସନ୍ନ କୁମାର ସ୍ୱାଇଁ, ପ୍ରଥମ ସଂସ୍କରଣ, ଓଡ଼ିଶା ବୁକ୍ ଷ୍ଟୋର, କଟକ, ୨୦୦୪, ପୃ.୧୭/୧୮

୯. ସ୍ୱାଇଁ, ଦିଲୀପ କୁମାର : ନୂଆ କବିତାର ନକ୍‌ସା, ପ୍ରଥମ ସଂସ୍କରଣ, ବିଜୟିନୀ ପବ୍ଲିକେଶନ୍ସ, ଶଙ୍କରପୁର, ଅରୁଣୋଦୟ ମାର୍କେଟ, କଟକ, ପୃ.୬୮

୧୦. ବେହେରା, ହରିଶ୍ଚନ୍ଦ୍ର : ଆଧୁନିକତା ବନାମ ଉତ୍ତର ଆଧୁନକତା : ଏକ ବିଚାର ବିମର୍ଶ, କାବ୍ୟଲୋକ, ସଂ. ଭିକାରୀ ଧଳ, ପଞ୍ଚଦଶ ବର୍ଷ, ଚତୁର୍ଥ ସଂଖ୍ୟା – ୨୦୧୧, ପୃ.୧୧